# ଜ୍ଞାନ-ଗଙ୍ଗା ।

(ପ୍ରଥମ ଭାଗ ।)

ଖଲ୍ଲିକୋଟ୍ ଏବ ଅଷ୍ଟଦୁର୍ଗାଧୀଶ୍ୱର

ରାଜା ଶ୍ରୀ ହରିହର ମର୍ଦ୍ଦରାଜ ଦେବଙ୍କ

ଦ୍ୱାରା

ସମ୍ପାଦିତ ଓ ପ୍ରକାଶିତ ।

ଜ୍ଞାନ-ଗିରିର ଉଚ୍ଚତର ଶିଖରରେ ଆରୋହଣ କର ଏବ ଅଜ୍ଞାନତା ବିନାଶ କର । ମାନବର ଯାହା ଜ୍ଞାତ ହେବା ଅବଶ୍ୟକ ଏପରି କୌଣସି ବିଷୟ କହିବାରୁ ବିରତ ହୁଅନାହିଁ । ଟମାସ୍ ଗାରଫିଲ୍ଡ୍ ।

ରମ୍ଭା ମର୍ଦ୍ଦରାଜ-ପ୍ରେସରେ ମୁଦ୍ରିତ ।

୧୯୦୪

ମୂଲ୍ୟ ଏକ ଅଣା ।



# ଭୂମିକା ।

ଅଜକାଲି ଶିକ୍ଷିତବ୍ୟକ୍ତିମାନେ ବିଦେଶୀୟ ବିଖ୍ୟାତ ବ୍ୟକ୍ତି-ମାନଙ୍କ ବଚନମାଳା ପ୍ରାୟ ସକଳ ସମୟରେ ଉଦାହରଣ-ଉପଦେଶରୂପେ ବ୍ୟବହାର କରିଥାନ୍ତି । ଦୁଃଖର ବିଷୟ ଉତ୍କଳଭାଷାରେ ସେହିସବୁ ସାରବାକ୍ୟ ଶିକ୍ଷାର ଉପଯୋଗୀ କୌଣସି ପୁସ୍ତକ ନଥିବାରୁ ଅପର ସାଧାରଣ ବ୍ୟକ୍ତିମାନେ ତାହା ଜାଣି ପାରୁନାହାନ୍ତି । ଏହି ଅଭାବ ପୂରଣ କାମନାରେ ଆମ୍ଭେ କେତେଗୁଡ଼ିଏ ବୈଦେଶିକ ମହାଜନୋକ୍ତି ସଙ୍କଳନ କରି ଏ ପୁସ୍ତକଖଣ୍ଡି ପ୍ରକାଶ କଲୁଁ । ଏତଦ୍ଦ୍ୱାରା ଜନ-ସାଧାରଣଙ୍କର ଉପକାର ଲକ୍ଷିତ ହେଲେ ଅତଃପର ଦେଶୀୟ ମହାଜନମାନଙ୍କ ସଦୁକ୍ତି ସଂଗ୍ରହ ଓ ପ୍ରକାଶର ଚେଷ୍ଟା କରାଯିବ ।

ଏ ପୁସ୍ତକ ସମ୍ପାଦନ ବିଷୟରେ 'ପ୍ରଜାବନ୍ଧୁ'ର ସମ୍ପାଦକ ଶ୍ରୀଯୁକ୍ତ ନୀଳମଣି ବିଦ୍ୟାରତ୍ନ ବିଶେଷ ସାହାଯ୍ୟ କରିଥିବାରୁ ମୁଦ୍ରିତ ପୁସ୍ତକ ସହିତ ଏ ଗ୍ରନ୍ଥର ସ୍ୱତ୍ୱାଧିକାର ତାହାଙ୍କୁ ପ୍ରଦାନ କଲୁଁ ।

୧୫ । ୭ । ୧୪ } ଶ୍ରୀ ହରିହର ମର୍ଦ୍ଦରାଜ ଦେବ ।
ରମ୍ଭା ରାଜପ୍ରାସାଦ } ରାଜା—ଖଲିକୋଟ ଏବଂ ଅଠଗଡ଼ ।




ସଂସାରରେ ପାପପରି ପୁଣ୍ୟ ମଧ୍ୟ ସଂକ୍ରାମକ । — ବର୍କ ।

ରମଣୀ ଈଶ୍ୱରଙ୍କର ପ୍ରଧାନ ସୃଷ୍ଟି । — କଂଗ୍ରେଭ ।

ସଦିଚ୍ଛା ସତ୍‌କାର୍ଯ୍ୟର ବୀଜ ସ୍ୱରୂପ । — ନେଷ୍ଟଲ ।

ସ୍ତ୍ରୀଲୋକମାନେ ଆମ୍ଭମାନଙ୍କୁ ଶାନ୍ତି, ସୌଜନ୍ୟ ଏବଂ ମହତ୍ୱ ଶିକ୍ଷା ଦିଅନ୍ତି । — ଭଲ୍‌ଟାୟାର ।

ଲୁହା ଲୁହାକୁ ପଜାଏ । — ବାଇବେଲ ପ୍ରବାଦ ।

ମୁଁ ଯାହାକିଛି ହୋଇଅଛି ତାହା ମା'ର ହାତରେ ଗଠିତ ହୋଇ । — ଜନ କୁଇନ୍ସି ଆଡାମ୍‌ସ ।

ସ୍ତ୍ରୀଲୋକ ଯଦବା ସ୍ୱର୍ଗଭ୍ରଂଶର କାରଣ ହୁଏ, ତଥାପି ସେହି କେବଳ ସ୍ୱର୍ଗକୁ ପୁନରୁଦ୍ଧାର କରିଥିଲେ । — ହୁଇଟିଅର ।

ସ୍ତ୍ରୀଲୋକ ଯେତିକି ସ୍ତ୍ରୀ ପ୍ରକୃତି ସମ୍ପନ୍ନ ହେବେ ସେତିକି ପୂର୍ଣ୍ଣାଦର୍ଶ । — ଗ୍ଲାଡଷ୍ଟୋନ୍ ।

ସହାନୁଭୂତି ଦ୍ୱାରା କୁଟୁମ୍ବ ଲାଭହୁଏ । — ଗାଞ୍ଜିକ ।

ସୁନ୍ଦରୀ ସ୍ତ୍ରୀ ରତ୍ନ, ସାଧ୍ୱୀ ସ୍ତ୍ରୀ ମହାରତ୍ନ । — ସାନଡ଼ୀ ।

ମନୁଷ୍ୟର ଗୃହ ତାହାର ଦୁର୍ଗ ସ୍ୱରୂପ । — କୋକ୍ ।

ସମୁଦାୟ ମହତ୍ ଘଟନାର ମୂଳରେ ରମଣୀ ବିଦ୍ୟମାନ ।
ଡାମାର ଟାଇନ୍ ।

ରମଣୀର ହୃଦୟ ଯେତେବେଳେ ଦୟାର ଆଧାର ହୁଏ, ତଦପେକ୍ଷା ଈଶ୍ୱରଙ୍କର ସୃଷ୍ଟିରେ କୋମଳତର ବସ୍ତୁ ଅଉକିଛି ନାହିଁ । ଲୁଥାର ।

ଆଶା କାତର ଲୋକର ସ୍ୱପ୍ନମାତ୍ର । ପ୍ରାୟର୍ ।

ଦୁଃଖ ପରେ ସୁଖ ବଡ ଆନନ୍ଦଜନକ । ଡ୍ରାଇଡେନ୍ ।

ଅଜ୍ଞାନ ହେଲେ ସର୍ବଜ୍ଞାନ ଲାଭ ହୁଏ । ପୋପ ।

ନିର୍ମଳଚିତ୍ତ ବ୍ୟକ୍ତିମାନେ ଧନ୍ୟ, କାରଣ ସେମାନେ ପରମେଶ୍ୱର ଦର୍ଶନ ଲାଭ କରିବେ । ସେଣ୍ଟମାଥିଉ ।

ଜ୍ଞାନାଲୋକ ପ୍ରକୃତରେ କର୍ଯ୍ୟୋନ୍ମୁଖ । ଯୁଙ୍ଗ ।

ଗଳୋଡ଼ିତ ପ୍ରସ୍ତରଖଣ୍ଡ ଶୈବାଳ ଯୁକ୍ତ ହୁଏନାହିଁ । ଟ୍ୟାସାର ।

ବିଶ୍ୱାସ ପ୍ରତ୍ୟକ୍ଷ ଦର୍ଶନ, ଏହା ଈଶ୍ୱର ଓ ପରଲୋକ ସାକ୍ଷାତ ଦର୍ଶନ କରେ । କେଶବଚନ୍ଦ୍ର ।

ଶୁଦ୍ଧ ଲୋକଙ୍କୁ ସବୁ ବିଶୁଦ୍ଧ ଦେଖାଯାଏ । ଟାଇଟସ୍ ।

ଯେ ମୋ ନିକଟରେ ଉପସ୍ଥିତ ହୁଏ, ସେ ଯେ କୌଣସି ବିଷୟରେ ମୋହୋର ଗୁରୁ । ଏମର୍ଶନ ।

ଅର୍ଥଲୋଭ ସବୁ ଦୁଃଖର ମୂଳ । ବାଇବଲ୍ ଟିମୋଥି ।

ମୁଁ ଦଶଜଣ ଲୋକର ବଳ ଧାରଣ କରେଁ, କାରଣ ମୋହର ହୃଦୟ ନିର୍ମଳ । ଟେନିସନ୍ ।

ନମ୍ର ବ୍ୟକ୍ତିମାନେ ଧନ୍ୟ, କାରଣ ସେମାନେ ପୃଥିବୀ ଅଧିକାର କରିବେ । ସେଣ୍ଟ ମାଥିଉ ।

ମନ ନରକକୁ ସ୍ୱର୍ଗ ଓ ସ୍ୱର୍ଗକୁ ନରକ କରିପାରେ । ମିଲଟନ୍ ।

ମୁଁ କେବଳ ଏତିକି ଜାଣେ ଯେ "ମୁଁ କିଛି ଜାଣେନାହିଁ ।" ସକ୍ରେଟିସ ।

ମୋତେ ଅଳ୍ପ ପରିମାଣରେ ସ୍ନେହକର, କିନ୍ତୁ ସେହି ସ୍ନେହ ଅଧିକ ସ୍ଥାୟୀ ହେଉ । ମାର୍ଲୋ ।

ଏହି ଯେ ନିଶ୍ୱାସ ବନ୍ଧୁଅଛି ଏହା ଅପେକ୍ଷା ଘନିଷ୍ଠତର । ତୁମ୍ଭେ ପରମେଶ୍ୱରଙ୍କୁ ସ୍ମରଣ କର । ଇପିକଟେଟସ ।

ଯଦି ସେ (ଈଶ୍ୱର) ମୋତେ ତ୍ୟାଗ କରନ୍ତି ତଥାପି ମୁଁ ତାଙ୍କୁ ବିଶ୍ୱାସ କରିବି । ଦାଉଦ୍ ।

ଜନସାଧାରଣର ଅନ୍ତଃକରଣ ବୃତ୍ତି ଅନୁକୂଳ ନହେଲେ ଦେଶୋଦ୍ଧାରକାରୀ ମହାପୁରୁଷର ଆବିର୍ଭାବ ହୁଏ ନାହିଁ । କାର୍ଲାଇଲ ।

ଯେଉଁମାନେ ନିଜକୁ ସାହାଯ୍ୟ କରନ୍ତି ଈଶ୍ୱର ସେମାନଙ୍କର ସହାୟ ହୁଅନ୍ତି । ଫ୍ରାଙ୍କଲିନ୍ ।

ତୁମ୍ଭେମାନେ ବିଶ୍ୱାସ କରୁଁ ଯେ ସକଳ ପ୍ରକାର ଅମଙ୍ଗଳର ଶେଷରେ କିଛି ମଙ୍ଗଳ ଅଛି । ଟେନିସନ ।

ଉନ୍ନତ ମନୁଷ୍ୟ ଆତ୍ମାନୁସନ୍ଧାନ କରେ, ନିକୃଷ୍ଟ ବ୍ୟକ୍ତିହିଁ ପରାନୁସନ୍ଧାନ ପ୍ରୟାସୀ । କନ୍‌ଫୁସେ ।

ମୁଁ ଯିଶୁ, ମୂଷା ଓ ସେଣ୍ଟପଲ ଅପେକ୍ଷା ବଡ଼, ନିଜର ଶକ୍ତି ଉପରେ ଏପରି ବିଶ୍ୱାସଥିବା ଆବଶ୍ୟକ । ଥିଓଡ଼ୋରପାର୍କାର ।

ଯେ ବ୍ୟକ୍ତି ସମୟକୁ ଉପେକ୍ଷାକରେ ସମୟ ତାହାପ୍ରତି ବାମ ହୋଇ ଥାଏ । ଫ୍ରାଙ୍କଲିନ ।

ଅତିରିକ୍ତ ଶିଷ୍ଟତା ପ୍ରଦର୍ଶନ କଲେ ଅନ୍ୟ ଲୋକର ବିରକ୍ତି ଓ ବିଶ୍ୱାସ ଭଙ୍ଗ ହୁଏ । ବେକନ ।

ଅର୍ଥ ଓ ସମ୍ମାନପ୍ରାର୍ଥୀର ସତ୍ୟ, ପରିଶ୍ରମୀ ଓ ମିତବ୍ୟୟୀ ହେବା ଆବଶ୍ୟକ । ଗୋଲ୍ଡସ୍ମିଥ ।

ମହାପୁରୁଷମାନେ ସ୍ୱଦେଶ ଓ ସ୍ୱଗୃହ ଛଡ଼ା ସବୁଠି ମର୍ଯ୍ୟାଦା ପାଆନ୍ତି । ସେଣ୍ଟମାଥିଉ ।

ଜଣେ ମନୁଷ୍ୟ ଯେ କାର୍ଯ୍ୟ କରିଅଛି ସମସ୍ତଙ୍କର ସେହି କାର୍ଯ୍ୟ କରିବାର ଅଧିକାର ଓ ଶକ୍ତିଅଛି । ଇମର୍ସନ୍ ।

ପୁରାତନ ବିଧାନ ପରିବର୍ତ୍ତିତ ହେଉଅଛି ଓ ନୂତନ ବିଧି ତାହାଁର ସ୍ଥାନ ଅଧିକାର କରୁଅଛି । ଟେନିସନ୍ ।

ଯେ ବ୍ୟକ୍ତି ଆତ୍ମବିଶ୍ୱାସ ଉପରେ ନିର୍ଭର କରିପାରେ ତାହାର ଜୟ ଅନିବାର୍ଯ୍ୟ । ଲର୍ଡଲିଟନ୍ ।

ଜ୍ଞାନୀ ବ୍ୟକ୍ତି ଭାଗ୍ୟଦ୍ୱାରା ଖଣ୍ଡ ବିଖଣ୍ଡିତ ହେଲେ ମଧ୍ୟ ବିପ୍ନ ବିପତ୍ତି ତାହାର କାର୍ଯ୍ୟ ହାନି କରି ପାରେନାହିଁ । ପ୍ଲୁଟାର୍କ ।

ଜଗତରେ ଅସାଧ୍ୟ କିଛି ନାହିଁ, ପରିଶ୍ରମ ଦ୍ୱାରା ସବୁ ସିଦ୍ଧ ହୁଏ । କଲମ୍ୟାନ ।

ଯେ ବ୍ୟକ୍ତି ଅବିଶ୍ରାନ୍ତ ପରିଶ୍ରମରେ ସକ୍ଷମ ତାହାର କଦାଚ କୌଣସି ବିଘ୍ନ ଘଟେ ନାହିଁ । କୋଲଟନ ।

ଶତ୍ରୁର ଉପକାର କର ସେ ବ୍ୟକ୍ତି ତୁମ୍ଭର ବନ୍ଧୁ ହେବ । ଖ୍ରୀଷ୍ଟନୀତି ।

ମିତବ୍ୟୟିତା ବାର୍ଦ୍ଧକ୍ୟର ସୁଖାସନ । ଫ୍ରାଙ୍କଲିନ ।

ମିତବ୍ୟୟିତା ବିଜ୍ଞତାର ଦୁହିତା, ମିତାଚାରର ସହୋଦରା ଏବଂ ଦାନଶୀଳତାର ଜନନୀ । ଡାକ୍ତର ଜନସନ ।

ଧନଉପାର୍ଜନର ବାଟ-ହାଟକୁ ଯିବା ବାଟପରି ପ୍ରଶସ୍ତ, ପରିଶ୍ରମ ଓ ମିତବ୍ୟୟ ଉପରେ ଏହା ନିର୍ଭରକରେ ।

ଫ୍ରାଙ୍କଲିନ୍ତ ।

ଶୀଘ୍ର ଶୀଘ୍ର ଶୟନ ଏବଂ ଶୀଘ୍ର ଶୀଘ୍ର ଶଯ୍ୟାରୁ ଗାତ୍ରୋତ୍ଥାନ କଲେ ମାନବ ଧନୀ, ଜ୍ଞାନୀ ଓ ନିରୋଗ ହୋଇଥାଏ ।

ଫ୍ରାଙ୍କଲିନ ।

ତୁମ୍ଭର ଅନ୍ତର୍ନିହିତ ଭାବ ନିର୍ଭୟରେ ପ୍ରକାଶକର । ଦେଖିବ ତାହାହିଁ ସାର୍ବଭୌମିକ ସତ୍ୟ ସ୍ୱରୂପ ପରିଗଣିତ ହେବ ।

ଏମାର୍ସନ ।

ଯେବ୍ୟକ୍ତି କୌଣସି ବିଷୟର ସଂଶୋଧନ କରିପାରେ ସେ ଧନ୍ୟ, ଯେ ବ୍ୟକ୍ତି ସେ ବିଷୟରେ କେବଳ ଅଭିଯୋଗ କରେ ସେ ଧନ୍ୟ ନୁହେ । ଲର୍ଡକୋକ୍ ।

କ୍ଷମାଶୀଳତା ସୌଭାଗ୍ୟର ଜନନୀ । ସ୍ମାଇଲ ।

ଯଦି ସ୍ତ୍ରୀ, ପୁତ୍ର, ଯଶ ଓ ମାନ ଏକ ଏକ ହୋଇ ଅନ୍ତର୍ହିତ ହୁଏ ତଥାପି ମୁଁ ମିଥ୍ୟା କଥା କହିବି ନାହିଁ । ହକ୍ସ୍‌ଲି ।

ଜଗଦୀଶ୍ୱର ଯେପରି ଦୟାଶୀଳ ହୋଇ ଲୋକର ଅସଂଖ୍ୟ ପାପ କ୍ଷମା କରନ୍ତି, ଲୋକଙ୍କ ନିକଟରେ ସେହିପରି ଶିଷ୍ଟାଗ୍ରହୀର ଶତ ଅପରାଧ ମାର୍ଜିତ ହୁଏ । ଗ୍ରେଭିଲ୍ ।

ପରିଶ୍ରମୀର ଚେଷ୍ଟା ସର୍ବଥରେ ଅଗ୍ରସର ହୋଇଥାଏ । ବକ୍‌ଷ୍ଟନ ।

ଅସମ୍ଭବ ! ଅସମ୍ଭବ ! "ଅସମ୍ଭବ" ଶବ୍ଦ ଫରାସୀ ଭାଷାରେ ନାହିଁ । ତାହା ଅପଦାର୍ଥମାନଙ୍କ ଅଭିଧାନର ଶବ୍ଦ ।

ନେପୋଲିୟନ ବୋନାପାର୍ଟ ।

ଯେଉଁ କାର୍ଯ୍ୟରେ ନିଯୁକ୍ତ ହୋଇଅଛ ଯଥାଶକ୍ତି ତାହା ସୁସମ୍ପନ୍ନ କରିବାକୁ ଚେଷ୍ଟା କର । ସଲୋମନ ।

ପ୍ରକୃତିର ସଙ୍ଗୀତ ସମସ୍ତ ଉପରେ ତତ୍ପରତା ସହିତ ଯେଉଁ ବ୍ୟକ୍ତି ଅଧିକାର ସ୍ଥାପନ କରିବାକୁ ସକ୍ଷମ ସେହି ବ୍ୟକ୍ତିହିଁ ଶ୍ରେଷ୍ଠ । ହେରିଡୋଟସ ।

ଚିନ୍ତା ଜୀବନର ଶତ୍ରୁ । ସେକ୍ସପିୟର ।

ତୁମ୍ଭର ଅପମାନ ଗୁଡିକ ପାଣିର ଗାର ହେଉ । ବାଉନ

ବାତୁଳ ହେବାରେ ସୁଖ ଅଛି, ସେ ସୁଖ ବାତୁଳ ଛଡା ଅନ୍ୟ କେହି ଜାଣେ ନାହିଁ । ଡ୍ରାଇଡେନ ।

ଯେ ବ୍ୟକ୍ତି ଆଶାଉପରେ ନିର୍ଭର କରେ ତାହାକୁ ଅନଶନରେ ପ୍ରାଣ ପରିତ୍ୟାଗ କରିବାକୁ ହୁଏ । ପରିଶ୍ରମ ଅଭାବର ମୁଖାପେକ୍ଷୀ ନୁହେ ।

ଫ୍ରାଙ୍କଲିନ ।

ପରିଶ୍ରମ ଦ୍ୱାରା ଲାଭ ନହୁଏ ଏପରି କୌଣସି ବିଦ୍ୟା ବା ବିଜ୍ଞାନ ଶାସ୍ତ୍ର ନାହିଁ । ପରିଶ୍ରମ ଦାର୍ଣନକର ପରଶମଣି ।

ଲର୍ଡକ୍ଲାରେଣ୍ଡନ ।

ଚିନ୍ତାରୂପ ଅଗ୍ନିରେ ଯଦି ଶ୍ରମକାଷ୍ଠ ପ୍ରଯୋଜିତ କରା ନଯାଏ ତାହାହେଲେ ଚିନ୍ତାର ତେଜ କ୍ରମଶଃ ହ୍ରାସ ହୋଇ ଆସେ ।

ଭଲଟାୟାର ।

ମୋତେ ଏକଶତ ସୁମାତା ଦିଅ, ଦେଖିବ ମୁଁ ଫରାସୀ ଜାତିକୁ ମହାଜାତିରେ ପରିଣତ କରିବ ।

। ନେପୋଲିୟନ ବୋନାପାର୍ଟ ।

ସୌଭାଗ୍ୟର ଧନାଗମରେ ଯେଉଁ ବ୍ୟକ୍ତି ସମ୍ୟ ପ୍ରତ ଜନ୍ୟ ରଖନ୍ତି ସେହି ବ୍ୟକ୍ତି ସଂସାରରେ ବିଜ୍ଞ ଓ ବିଚକ୍ଷଣ ।

ସଲୋମନ ।

ଘଣ୍ଟା ଓ ମିନିଟର କଣ୍ଟାହୀନ ଘଟିକାଯନ୍ତ୍ର ଚଳିଲେ ବା ବନ୍ଦ ହେଲେ ଯେପରି କୌଣସି କାର୍ଯ୍ୟ ହୁଏ ନାହିଁ, ସେହିପରି ଅଳସ ବ୍ୟକ୍ତିର ଏ ସଂସାରରେ ଆବଶ୍ୟକତା ନାହିଁ ।

କାଉପର ।

ପିଲାଦିନୁଁ ମନୁଷ୍ୟର ପ୍ରକୃତି ଜଣା ପଡ଼େ । ମିଲ୍‌ଟନ୍ ।

ପାପୀମାନଙ୍କୁ ଆମ୍ଭମାନଙ୍କର କ୍ରନ୍ଦନ କରିବା ଉଚିତ, କିନ୍ତୁ ଆମ୍ଭେମାନେ ପାପସଙ୍ଗେ କ୍ରୀଡ଼ା କରିବା ନାହିଁ ।

ବ୍ରାଙ୍କ

ଜାଣିଥିବା ଲୋକମାନଙ୍କ ସଙ୍ଗେ ଜ୍ଞାନ ଓ ଦେଖିଥିବା ଲୋକଙ୍କ ସଙ୍ଗେ ବସ । ସେଣ୍ଟପଲ ।

ବିବେକର ଅଦାଲତରେ ବଡ ସାନ ବିଚାର ନାହିଁ ।

ଡେଲିସ ।

ସ୍ନେହ ଜୀବନର ଅନ୍ତିମ କାଳରେ ମଧ୍ୟ ଆନନ୍ଦ ଦିଏ ।

ସ୍କଟ୍ ।

ଯେଉଁ ଲୋକ କେବେହେଁ ଆଘାତ ପାଇନାହିଁ ସେ କ୍ଷତ ଚିହ୍ନ ଦେଖିଲେ ବିଦ୍ରୂପ କରେ । ସେକ୍ସପିଅର ।

ଅମ୍ଭମାନଙ୍କ ଅନ୍ତଃସ୍ଥଳରୁ ବହିର୍ଗତ ହାସ୍ୟରେ ସୁଦ୍ଧା ଦୁଃଖ-ମିଶ୍ରିତ । ଶେଲି ।

ଆମ୍ଭମାନଙ୍କର ଅଜ୍ଞାନ୍ଧ ଲୋକ ଅଛନ୍ତି ଏକଥା ଜାଣି-ପାରିଲେ ଅନେକ ଉପଦ୍ରବର ଲାଭ ହୁଏ । ଅନାମ ।

ନ ପଡ଼ିଲେ ବାହାଦୁରି ହୁଏ ଏମନ୍ତ ନୁହେଁ, କିନ୍ତୁ ଯେତେଥର ପଡ଼ିବ, ସେତେଥର ଉଠି ବସିଲେ ସିନା ବାହାଦୁରି । ଅନାମ ।

ଅନ୍ୟମାନେ ତୁମ୍ଭଙ୍କୁ ଯେତେ ମନୋହରନ୍ତୁ ତଦପେକ୍ଷା ଭଲ ହେବାକୁ ନିଜେ ଶିକ୍ଷାକର । ବ୍ରାଉନ ।

ସ୍ୱଦେଶ, ଈଶ୍ୱର ଓ ସତ୍ୟ ଏହି ତିନୋଟି ତୁମ୍ଭର ସର୍ବଦା ଲକ୍ଷ୍ୟ ହେଉ । ସେକ୍ସପିଅର ।

ଯେଉଁମାନଙ୍କ ହୃଦୟରେ ଉଚ୍ଚଚିନ୍ତା ଥାଏ, ସେମାନେ କେବେହେଁ ଏକାକୀ ନୁହନ୍ତି । ସର, ଫିଲିପ୍ସ ସିଡ୍ନୀ ।

ଯାହା ପ୍ରତି କ୍ରୋଧ କରାଯାଏ ତାହାର ଯେତେ ଅନିଷ୍ଟ ନହୁଏ, ଯେ କ୍ରୋଧକରେ ତାହାର ତଦପେକ୍ଷା ବେଶୀ ଅନିଷ୍ଟ ହୁଏ । କ୍ଲାରେଣ୍ଡନ୍ ।

ଲଜ୍ଜାଶୀଳତା ଯୁବାର ଭୂଷଣ, କିନ୍ତୁ ବୃଦ୍ଧର ଦୂଷଣ । ଆରିଷ୍ଟଟ୍ଲ ।

ନିଜର ବାହ୍ୟକ ଆଚରଣ ଖଣ୍ଡିଏ ଦର୍ପଣ ପରି, ଯହିଁରେ ପ୍ରତ୍ୟେକ ମନୁଷ୍ୟର ରୂପ ପ୍ରତିଫଳିତ ହୁଏ । ଗେଟେ ।

ବୟସ ବୃଦ୍ଧି ସଙ୍ଗେ ସଙ୍ଗେ ଜୀବନ କ୍ଷୟ ହେଉଥାଏ । ୟଙ୍ଗ୍ ।

ମନୁଷ୍ୟର ବିବେକ ମନୁଷ୍ୟର ଏକମାତ୍ର ବିଚାରପତି । ଲିଟନ୍ ।

ଧୃତି ସନ୍ତୁଷ୍ଟ ବ୍ୟକ୍ତି ମହାପୁରୁଷ ଅଟନ୍ତି । ସ୍ପେନ୍ସର୍ ।

ଭୀରୁମାନେ ମୃତ୍ୟୁ ପୂର୍ବରୁ ଅନେକ ଥର ମରି ଥାଆନ୍ତି, କିନ୍ତୁ ସାହସୀ ଲୋକ ଥରେ ମାତ୍ର ମରେ । ସେକ୍ସପିଅର ।

ଛୁରି ଛୁରିକୁ କାଟେ । ଫୋର୍ଡ ।

ଦୂରତ୍ୱ ପର୍ବତକୁ ରମଣୀୟ ନୀଳାଭ୍ରାଭ ବିଭୂଷିତ କରେ । କାମ୍ପବେଲ୍ ।

କର୍ତ୍ତବ୍ୟ ଆମ୍ଭମାନଙ୍କ ହାତରେ, ଫଳ ଈଶ୍ୱରଙ୍କ ହାତରେ ।
ସେସିଲ୍ ।

ପୃଥିବୀରେ ଏପରି କୌଣସି ଦୁଃଖ ନାହିଁ ଯାହାକୁ ସ୍ୱର୍ଗ ନିରାଇ ଦେଇ ନପାରେ । ମୂର ।

ଭ୍ରମରେ ପଡ଼ିବା ମାନୁଷିକ, କ୍ଷମା କରିବା ଐଶ୍ୱରିକ ।
ପୋପ ।

ଉତ୍ତମ ଲୋକମାନେ ବିପତ୍ତି ଦ୍ୱାରା ଅଧିକତର ଉତ୍ତମ ହୁଅନ୍ତି । ଗ୍ରେଞ୍ଜର୍ ।

ପାଣ୍ଡୁ ରୋଗୀକୁ ସବୁ ପଦାର୍ଥ ପୀତବର୍ଣ୍ଣ ଦିଶେ । ପୋପ ।

ଭବିଷ୍ୟତର ଚିତ୍ର ଯେତେ ଦୂର ଆଶାପ୍ରଦ ହେଲେହେଁ ତାକୁ ବିଶ୍ୱାସ କର ନାହିଁ । ଲଙ୍ଗ୍‌ଫେଲୋ ।

ଗୋପନ ଭାବରେ ଉତ୍ତମ କାର୍ଯ୍ୟ କର । ପୋପ ।

କୃତଜ୍ଞ ଲୋକ କୃତଜ୍ଞତା ଦ୍ୱାରା ସଙ୍ଗେ ସଙ୍ଗେ ଋଣ ମୁକ୍ତହୁଏ । ମିଲ୍ଟନ ।

ଦୁଃଖଗ୍ରସ୍ତ ଲୋକ ଦୁଃଖୀର ସଙ୍ଗ ଭଲ ପାଏ ।
ସେକ୍ସପିଅର ।

ଅଭ୍ୟାସ ପ୍ରକୃତିର ଦଶଗୁଣ । ଡ୍ଏଲିଙ୍ଗ୍‌ଟନ ।

ଧର୍ମ୍ମୀମାନେ ଯେପରି ଭାବରେ ଭାବିଲେ ମଧ୍ୟ ଯୁଦ୍ଧ ପାଶବିକ ଓ ନୃଶଂସ ବ୍ୟାପାର ବ୍ୟତୀତ ଆଉ କିଛି ନୁହେଁ ।
ଗର୍ଡନ ।

କ୍ଷୁଦ୍ର କ୍ଷୁଦ୍ର ଅଭ୍ୟାସ କ୍ରମେ ଅପରାଧରେ ପରିଣତ ହୁଏ ।

ହ୍ୱାଟ୍ଲି ।

ଯେ କୌଣସି ବିଷୟରେ ଅଭିଜ୍ଞତା ଲାଭ କଲେ ମଧ୍ୟ ତାହା ଦ୍ୱାରା ଉପକାର ପାଇବ । ପୃଥିବୀରେ ଏପରି କୌଣସି ବସ୍ତୁ ନାହିଁ ଯାହାଦ୍ୱାରା କିଛି ହେଲେ ଶିକ୍ଷା ଲାଭ ନହୁଏ ।

ଡାକ୍ତର ଜନସନ ।

ନାରୀମାନେ କୌଣସି ଅଂଶରେ ପୁରୁଷମାନଙ୍କ ଅପେକ୍ଷା ହୀନ ନୁହନ୍ତି । ବିଶେଷତଃ ଧର୍ମ ପ୍ରବୃତ୍ତି ନାରୀ ହୃଦୟରେ ଯେପରି ବଳବତୀ, ପୁରୁଷର ହୃଦୟରେ ସେପରି ନୁହେଁ ।

ଜନଷ୍ଟୁୟାର୍ଟ ମିଲ ।

ମନୁଷ୍ୟ ଯଦି ସମୟର ସଦ୍ ବ୍ୟବହାର କରେ ତାହାହେଲେ କର୍ଷିତ କ୍ଷେତ୍ର ପରି ଫଳ ଲାଭ ହେବ । ଉର୍ବର କ୍ଷେତ୍ର ଯଦି ଆବାଦ କରାନଯାଏ ସମୟରେ ତାହା କଣ୍ଟକାବୃତ ହୁଏ ।

ଡେଭିଡ ହିଉମ ।

ବ୍ୟବହୃତ ଗୃହର ଉଜ୍ଜଳତା ଦିନକୁଦିନ ବୃଦ୍ଧି ହୋଇଥାଏ । ଅଳସ୍ୟ ରୂପ କଳଙ୍କ ଯେପରି ଶରୀର କ୍ଷୟ କରେ ପରିଶ୍ରମରେ କେବେହେଁ ସେପରି ନଷ୍ଟ ହୁଏନାହିଁ । ଅଧିକନ୍ତୁ ଭବିଷ୍ୟରେ ଉତ୍ତରୋତ୍ତର ଲାବଣ୍ୟର ବୃଦ୍ଧିହୁଏ ।　　　　ଯ୍ରୁତପ୍ରବାଦ ।

ସଙ୍ଗୀତ ବିଦ୍ୟା ନ ଶିଖିଲେ ମନୁଷ୍ୟର ଶିକ୍ଷା ସମ୍ପୂର୍ଣ୍ଣ ହୁଏନାହିଁ ।　　　　ପ୍ଲେଟୋ ।

ମାନବ ସମାଜରେ ତୁମ୍ଭର ପ୍ରଭୁତ୍ୱର ଯେତେ ଅଧିକ ପ୍ରଭାବ ଥିଲେ ମଧ୍ୟ ଯଦି ତୁମ୍ଭଙ୍କ ଉଚ୍ଚତର ଧର୍ମ୍ମତତ୍ତ୍ୱର ଅନନ୍ତ-ମଧୁ ରାଜ୍ୟରେ ପ୍ରବେଶ କରିବାକୁ ହୁଏ ତେବେ ତୁମ୍ଭର ଅମ୍ଭାକୁ ସେଠାରେ ନାଶ ଭାବରେ ପ୍ରବେଶ କରିବାକୁ ହେବ ।

ନାରୁମ୍ୟାନ ।

ପ୍ରତିଦିନହିଁ ଅମ୍ଭମାନଙ୍କ ଜୀବନର ଅଂଶ । ପ୍ରତ୍ୟେକ ଦିନର ସମଷ୍ଟିରେ ଆମ୍ଭମାନଙ୍କର ଜୀବନ ପୂରଣ ହୋଇଥାଏ । ଅତଏବ ପ୍ରତିଦିନ କୌଣସି ଏକ କାର୍ଯ୍ୟରେ ସଙ୍ଗତ ଥାଇ ସମୟର ସଦ୍‌ବ୍ୟବହାରରେ ଯେପରି ଦିନପାତ ହୁଏ ତତ୍ପ୍ରତି ଲକ୍ଷ୍ୟ ରଖିବା ସମସ୍ତଙ୍କର କର୍ତ୍ତବ୍ୟ । ବିଶପ ହଲ ।

ଯଦି ଜଗଦୀଶ୍ୱରଙ୍କ ନିକଟରୁ ଯାହା ପ୍ରାପ୍ତ ହେଉଅଛ ସେ ସମସ୍ତ ଏକ କାଳରେ ନଷ୍ଟ କରିବାକୁ ଇଚ୍ଛାକର, ଯଦି ତୁମ୍ଭେ ନିଜେ ଅସୁଖୀ ହେବାକୁ ଏବଂ ପରକୁ ଅସୁଖୀ କରିବାକୁ ବାସନା କର ତାହାହେଲେ ତୁମ୍ଭଙ୍କ ଅତୀବ ସରଳ ପଥ ରହିହୋଇଅଛି-କେବଳ ସ୍ୱାର୍ଥପର ହୁଅ । ରେଭରେଣ୍ଡ ଚାର୍ଲସ କିଂସ୍ଲୀ ।

ଉନ୍ନତର ପଦକ୍ଷେପ ହେବେ ସୁଦ୍ଧା ସ୍ଖଳିତ ହୁଏନାହିଁ । ଆତ୍ମ ବିଶ୍ୱାସରେ ଧର୍ମ୍ମର ସାହାଯ୍ୟ ଲାଭ ହୁଏ । ଯେବ୍ୟକ୍ତି ପରର ସାହାଯ୍ୟ ନନେଇ କାର୍ଯ୍ୟ କ୍ଷେତ୍ରରେ ଅଗ୍ରସର ହୁଏ ବିପୁଳ ବିପତ୍ତିରେ ସୁଦ୍ଧା ତାହାର ଲେଶମାତ୍ର ଅନିଷ୍ଟ ଘଟେନାହିଁ । ଆତ୍ମ ନିର୍ଭରଶୀଳ ବ୍ୟକ୍ତି ପ୍ରତି ବିଧାତା ଅନୁକୂଳ । ଇମର୍ସନ ।

ସୁଖୀ ପରିବାରରେ କି ଆନନ୍ଦ ! ମୋର ଯଦି ଶକ୍ତି ଥାନ୍ତା ତେବେ ଏହି ଦୁଃଖିତ ପୃଥିବୀକୁ କ୍ଷଣକାଳ ତାହାର ଗତିରୋଧ କରି ତାହା ଦର୍ଶନ କରିବାକୁ କହନ୍ତି । ଥିଓଡୋର ପାର୍କର ।

ଆଳସ୍ୟ ଶରୀର ଓ ମନର ଶତ୍ରୁ, ଗର୍ହିତ କାର୍ଯ୍ୟର ଧାତ୍ରୀ, ସଦୁପଦେଶର ବିମାତା, ଅନ୍ୟାୟ କାର୍ଯ୍ୟର ପୋଷକ, ନିର୍ଦ୍ଦିଷ୍ଟ ସାତଟି ମହାପାପର ଗୋଟିଏ ପାପ, ଶୟତାନର ଆସନ, ଚିତ୍ତ ବିକାର ଓ ଅନ୍ୟାନ୍ୟ ପୀଡାର ନିଦାନ । ବର୍ଟନ ।

ଯେ ବ୍ୟକ୍ତି ବିନା କାର୍ଯ୍ୟରେ ଏକମୁହୂର୍ତ୍ତ ନଷ୍ଟ କରେ ସେ ବ୍ୟକ୍ତି ଏକ ଦିନରେ ସହସ୍ର ମୁଦ୍ରା ଲାଭରୁ ବଞ୍ଚିତ ହୁଏ । ସାମାନ୍ୟ ଛିଦ୍ର ଦ୍ୱାରା ସୁବୃହତ୍ ଅର୍ଣ୍ଣବ ପୋତ ଜଳମଗ୍ନ ହୋଇପାରେ, ବିନ୍ଦୁ ବିନ୍ଦୁ ଜଳପାତରେ ସୁଦୃଢ଼ ପ୍ରସ୍ତରଖଣ୍ଡ ବିଦୀର୍ଣ୍ଣ ହୋଇଯାଏ । ଫ୍ରାଙ୍କଲିନ୍ ।

ମାନସିକ ଶକ୍ତିରେ ସ୍ତ୍ରୀ ପୁରୁଷଙ୍କ ମଧ୍ୟରେ ପାର୍ଥକ୍ୟ ଦୃଷ୍ଟ ହୁଏ । ଏହି ପାର୍ଥକ୍ୟ ସେମାନଙ୍କ (ନାରୀଜାତି) ପ୍ରତି ଯୁଗ ଯୁଗାନ୍ତର ବ୍ୟାପୀ ଅତ୍ୟାଚାରର ଫଳ । ନାରୀଜାତିମଧ୍ୟ ଏବିଷୟରେ ଅତିମାତ୍ରାରେ ଶିଥିଳତା ପ୍ରଦର୍ଶନ କରୁଅଛନ୍ତି । ବେଶ-ବିନ୍ୟାସରେ ସେମାନଙ୍କର ଯେତେଟିକି ବ୍ୟଗ୍ରତା ହୋଇଅଛି, ଆପଣାର ଅବସ୍ଥାର ଉନ୍ନତି ସକାଶେ ତେତିକି ଶକ୍ତି ନିୟୋଗ କରିଥିଲେ ସେମାନଙ୍କ ଅବସ୍ଥା ଅନେକ ପରିମାଣରେ ଉନ୍ନତ ହୋଇଥାନ୍ତା । ଫ୍ରାନ୍ସେସ ପାୱାର କବ ।

---

ନିମ୍ନଲିଖିତ ପୁସ୍ତକମାନ ଏଠାରେ ଏବଂ କଟକର ପୁସ୍ତକ ଦୋକାନମାନଙ୍କରେ ବିକ୍ରୟାର୍ଥ ଜମାଅଛି ।

| | |
|---|---|
| ଜାତୀୟ ଗୀତ ... .... | ଃ ୦ ୧ ୬ |
| ଉତ୍କଳ ଜାତୀୟଗୀତି ... .... | ଃ ୦ ୧ ୯ |
| ନାରିକେଳ ବୃକ୍ଷ ... ... | ଃ ୦ ୧ ୨ |
| ସମ୍ରାଟ ଚରିତ ... .... | ଃ ୦ / |
| ହେମଲତା .... .... | ଃ ୦ / |
| ସୁବର୍ଣ୍ଣରେଖା .... ... | ଃ ୦ / |
| ଶିକ୍ଷା-ବିନୋଦ .... .... | ଃ ୦ / ୬ |
| ରାମ ସହସ୍ରନାମ .... ... | ଃ ୦ / |
| ବସୁଠଙ୍କ ଟୀକାସ୍ଥା .... ... | ଃ ୦ / |
| ସଦାଗର ... ... | ଃ ୦ / ୬ |
| ନୀତି ପରାଗ ୧ ମ ... ... | ଃ ୦ / |
| ନୀତିପରାଗ ୨ ୟ .... .... | ଃ ୦ / |
| ଗୋଳ୍ପକଥା ୧ ମ ... .... | ଃ ୦ / |
| ଗୋଳ୍ପକଥା ୨ ୟ ... .... | ଃ ୦ / |
| ନୀତିମନୋରମା ... ... | ଃ ୦ ୧ ୨ |
| ନୀତି କମଳ ... ... | ଃ ୦ ୧ ୯ |
| ଭଜନ ରତ୍ନିକା .... .... | ଃ ୦ / |
| ଛନ୍ଦକାଳକୌତୁକ ... ... | ଃ ୦ ୧ ୯ |

ମେନେଜର—ମର୍ଦ୍ଦରାଜ ପ୍ରେସ
ରମ୍ଭା ପୋଃ • ଗଞ୍ଜାମ ।